# ବିଶ୍ୱେଶ୍ୱରାୟା ସ୍ମରଣେ



ଇଂ ସ୍ୱପ୍ନେଶ୍ୱର ଦାସ

ସ୍ବ. ଦାସ ରଚନାବଳୀ (୨୩)

# ବି
# ଶ୍ବେ
# ଶ୍ବ
# ର
# ଆ
# ସ୍ମରଣେ

ଇଂ ସ୍ବପ୍ନେଶ୍ବର ଦାସ, ଏମ୍. ଏ.

# ଭିଶ୍ୱେଶ୍ୱରାୟା ସ୍ମରଣେ

ଲେଖକ :

**ଇଂ ସ୍ୱପ୍ନେଶ୍ୱର ଦାସ**, ଏମ୍.ଏ.

ନରସିଂହପୁର, କଟକ

ପ୍ରକାଶକ :

**ରେଙ୍ଗାଲି କେନାଲ ମଣ୍ଡଳ**

ମହିଷାପାଟ, ଢେଙ୍କାନାଳ

ଦ୍ୱିତୀୟ ପ୍ରକାଶ—୧୯୯୨

ମୁଦ୍ରଣ :

**ମାହେଶ୍ୱରୀ ପ୍ରେସ୍, ଢେଙ୍କାନାଳ**

**ମୂଲ୍ୟ—ଟ ୧୦.୦୦**

# Visweswaraya Smarane

Writer :

**Er. Swapneswar Das,** M.A.

Narsinghpur, Cuttack

Publishar :

**Rengali Canal Circle**

Mahisapata, Dhenkanal

Second Publication—1992

Printing :

**Maheswari Press, Dhenkanal**

Price—Rs. 10.00

# ପଦେ ଅଧେ

ସ୍ରଷ୍ଟା ସୃଷ୍ଟି ନିମନ୍ତେ ପଦେ ଅଧେ ଲେଖେ କାରଣ ସୃଷ୍ଟି ରହସ୍ୟ ପାଠକ ହଠାତ୍ ସ୍ଥିର କରି ନପାରେ । ଏଇ ଧର୍ମ ନେଇ ଦି'ପଦ ଲେଖିବାକୁ ଯାଉଛି ।

ଇଞ୍ଜିନିୟର ମାନଙ୍କ ଜନକ ମୋକ୍ଷଗୁଣ୍ଡମ୍ ବିଶ୍ୱେଶ୍ୱରୟାଙ୍କ ଜନ୍ମ ତିଥିରେ କେତେକ ଇଂଜିନିୟର ଏକତ୍ରିତ ହୋଇ ତାଙ୍କରି ବିଷୟରେ ଆଲୋଚନା କରିଥାନ୍ତି; ଆଉ କେତେକ ସେଥିରୁ ବଞ୍ଚିତ ହୋଇଥାନ୍ତି । ପୁନଶ୍ଚ ସ୍ୱଳ୍ପ ସଂଖ୍ୟକ ଇଞ୍ଜିନିୟର ତାଙ୍କରି ବିଷୟରେ ଜାଣନ୍ତି । ଏହା ହୃଦୟଙ୍ଗମ କରି ସମସ୍ତ ଇଞ୍ଜିନିୟରଙ୍କ ଅବଗତ ନିମନ୍ତେ ଯେତିକ ଉପାଦାନ ସଂଗ୍ରହ କରିଛି ତ କୁଳ ନେଇ ପଦ୍ୟ ଆକାରରେ ଉପସ୍ଥାପିତ କରିବାକୁ ଚେଷ୍ଟା କରିଛି ।

ଇଞ୍ଜିନିୟର ହିସାବରେ ବିଶ୍ୱେଶ୍ୱରୟାଙ୍କ ବିଷୟରେ କିଛି ନଜାଣିବା ଅର୍ଥ ଗୁରୁପୂଜାର ବ୍ୟତିକ୍ରମ କରିବା । ଏଇ ଲକ୍ଷ୍ୟ ନେଇ ଏଇ ଲେଖା; ଆଉ କିଛି ନୁହେଁ ।

କର୍ମ୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ ।

ଲେଖକ

# ଅଭିମତ

ଓଡ଼ିଆ ସାହିତ୍ୟ ଏକାଡେମୀ ସମ୍ମାନପ୍ରାପ୍ତ ଲବ୍ଧପ୍ରତିଷ୍ଠ କବି ଶ୍ରୀ ଶ୍ରୀଚନ୍ଦ୍ର ନାୟକଙ୍କ ଲେଖନୀରୁ —

ଇଂ ସ୍ୱପ୍ନେଶ୍ୱର ଦାସଙ୍କ ରଚିତ "ବିଶ୍ୱେଶ୍ୱରୟା ସ୍ମରଣେ" ପୁସ୍ତିକାଟି ପାଠକରି ପ୍ରୀତ ହେଲି । କର୍ମଯୋଗୀ, ପ୍ରତିଭାବାନ୍ ମନିଷୀ ମାନଙ୍କର କର୍ମ ବହୁଳ ଆଦର୍ଶ ଜୀବନଚରିତ କାବ୍ୟ କବିତା ମାଧ୍ୟମରେ ରୂପାୟିତ କରିବା ଲୋକଶିକ୍ଷଣର ଏକ ଉପାଦେୟ ପନ୍ଥା ।

ଶ୍ରୀ ବିଶ୍ୱେଶ୍ୱରୟା ଭାରତର ଏକ ବିରଳ ଚରିତ୍ର । ଚରିତ୍ରବଳ, କର୍ମନିଷ୍ଠା ଓ ପାଣ୍ଡିତ୍ୟ ବଳରେ ସେ ସମଗ୍ର ଦେଶରେ ଏକ ସ୍ମରଣୀୟ ବ୍ୟକ୍ତିତ୍ୱ । କେବଳ ପରାଧୀନ ଭାରତ ବର୍ଷରେ ନୁହେଁ; ସ୍ୱାଧୀନୋତ୍ତର ଭାରତରେ ମଧ୍ୟ ସେ ତତ୍କାଳ ପ୍ରଚଳିତ ସର୍ବୋଚ୍ଚ ସମ୍ମାନ ଦ୍ୱାରା ଭୂଷିତ ହୋଇଥିଲେ । ଶ୍ରୀ ବିଶ୍ୱେଶ୍ୱରୟାଙ୍କୁ ସମ୍ମାନିତ କରି ସମଗ୍ର ଦେଶ ଓ ଜାତି ଗୌରବାନ୍ୱିତ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ସେଇପରି ଜଣେ ମହାନ ପୁରୁଷଙ୍କୁ ସ୍ମରଣକରି ସ୍ୱପ୍ନେଶ୍ୱର ବାବୁ ଯେଉଁ କବିତା ରଚନା କରିଛନ୍ତି ତାହା କେବଳ ସୁପାଠ୍ୟ ହୋଇନାହିଁ; ଏକ ଗୌରବମୟ ଜୀବନର ଅମର ଆଲେଖ୍ୟ ହୋଇପାରିଛି । ସ୍ୱପ୍ନେଶ୍ୱର ବାବୁ ନିଜେ ଜଣେ ଯନ୍ତ୍ରୀ । ତାଙ୍କ ଜୀବନରେ ନିଷ୍ଠା ଓ କର୍ତ୍ତବ୍ୟବୋଧ ରହିଛି । ତେଣୁ ପୂର୍ବସୂରୀ ମହାପୁରୁଷ ମାନଙ୍କର ଆଦର୍ଶରେ ସେ ଅନୁପ୍ରାଣିତ ହେବା ସ୍ୱାଭାବିକ । ତାଙ୍କର ପ୍ରଚେଷ୍ଟା ସର୍ବତୋଭାବେ ପ୍ରଶଂସନୀୟ ଓ ଅନ୍ୟମାନଙ୍କର ଅନୁକରଣୀୟ ।

ପୁସ୍ତିକାଟିରେ ମଧ୍ୟେ ମଧ୍ୟେ କବି କେତୋଟି ପ୍ରଶଂସନୀୟ ଚିହ୍ନର ଆବରଣ କରିଛନ୍ତି—ଯାହା ଛାତ୍ର ତଥା ସାଧାରଣଙ୍କ ପକ୍ଷରେ ଶିକ୍ଷଣୀୟ ହେବ । ଯଥା—

କର୍ତ୍ତବ୍ୟ ବୋଧ  କାର୍ଯ୍ୟ ଦକ୍ଷତା
କର୍ମ ନିଷ୍ଠା ସଙ୍ଗତରେ
ପ୍ରତିଭା ଥିଲେ ହିଁ  ସକଳ କରମେ
ସାଫଲ୍ୟ ମିଳେ ଅନ୍ତରେ ॥

ପୁନଶ୍ଚ :-

"ଜ୍ଞାନୀଜନ ସଦା  ପାଇଥାଏ ପୂଜା
ସକଳ ପରିସ୍ଥିତିରେ,
ଆଗ୍ରହ ବିଗ୍ରହ  ଯେ'ସ୍ଥାନେ ଯେପରି
କର୍ମ କ୍ଷେତ୍ର ପରିକାରେ"

ଅନ୍ୟ ଠାଏଁ :-

"ଭୁଲିଯାଏ ଜନ  ରହିଥାଏ ପୁଣ୍ୟ
ବାସ କରି ଏ ମହୀରେ
ହୋଇଲେ ସେ ମର  ହୁଅଇ ଅମର
ବିଧି ବିଧାନ ବିଧିରେ ॥"

× × ×

ଏହାଛଡ଼ା ଆହୁରି କେତେକ ସ୍ଥାନରେ କବି ଶ୍ରୀ ବିଶ୍ୱେଶ୍ୱରୟାଙ୍କ କର୍ମ ଓ କୀର୍ତ୍ତି ବହୁଳ ଜୀବନର ବିଶଦ ଚିତ୍ରଣ କରିବା ସଙ୍ଗେ ସଙ୍ଗେ ସାର୍ଥକ ଜୀବନ ଯାପନ କରିବା ପାଇଁ ବହୁ ଉପଦେଶ ବାଣୀର ସଂଯୋଜନା କରିଛନ୍ତି ।

ବିଦ୍ୟାର୍ଥୀ ମାନଙ୍କ ପାଇଁ ଏ ଗୁଡ଼ିକ ଅତ୍ୟନ୍ତ ଉପାଦେୟ । କର୍ତ୍ତବ୍ୟ କର୍ମରେ ନିୟୋଜିତ ସମସ୍ତ ବ୍ୟକ୍ତିଙ୍କ ପାଇଁ ମଧ୍ୟ ଏହି ସୂକ୍ତିମୁକ୍ତାବଳୀ ଗୁଡ଼ିକ ଚିର ସ୍ମରଣୀୟ । ସ୍ୱପ୍ନେଶ୍ୱର ବାବୁ ଶତାୟୁ ଶ୍ରୀ ବିଶ୍ୱେଶ୍ୱରୟ୍ୟାଙ୍କ ଅମର ଜୀବନୀ କବିତା ମାଧ୍ୟମରେ ଚିତ୍ରଣ କରି ନିଜ ଜୀବନର ସରଳତା, ସ୍ୱଚ୍ଛତା ଓ କର୍ମନିଷ୍ଠତାର ପରିଚୟ ଦେଇ ଅଛନ୍ତି । ଏକ ସୁସ୍ଥ ସମାଜ ଗଠନ ପାଇଁ ପ୍ରତିଭା ପୂଜାର ଆବଶ୍ୟକତା ରହିଛି । ଏଥିରୁ ଭବିଷ୍ୟତ ବଂଶଧର ପ୍ରେରଣା ଲାଭକରି ନିଜକୁ ତଦନୁଯାୟୀ ଗଢ଼ିତୋଳି ପାରିଲେ ସମାଜ ସମୁନ୍ନତ ହୋଇପାରିବ ତଥା ସମାଜର ଶାସନରେ ସଚ୍ଚରିତ୍ରତା, ସାଧୁତା ଓ କର୍ତ୍ତବ୍ୟ ପରାୟଣତା ପ୍ରତି ସମଧିକ ଆଗ୍ରହ ଓ ଆଦର ସୃଷ୍ଟି ହୋଇପାରିବ ।

ମୁଁ ରଚୟିତାଙ୍କ ସତ୍‌ପ୍ରୟାସ ସକାଶେ ଅଭିନନ୍ଦନ ଜଣାଉଛି ।

ଶ୍ରୀ ଶ୍ରୀବତ୍ସ ନାୟକ
୧୧ । ୭ । ୧୯୯୨
ଉତ୍ତର ମଧୁବନ
କୁଞ୍ଜକାନ୍ତ; ଢେଙ୍କାନାଳ

# ଅଭିମତ

ସାହିତ୍ୟର ବଡ଼ଦାଣ୍ଡରେ ହୃଦୟବନ୍ତ ପୁରୁଷ ଯାତ୍ରୀ ହେଲେ ଶାଶ୍ୱତ ସାରସ୍ୱତ ପ୍ରେମ ବେଶ୍ ଅନୁଭୂତ ହୁଏ । "ବିଶ୍ୱେଶ୍ୱରସ୍ୱାମୀ ସ୍ମରଣେ" ପାଠକାଳରେ ଇଞ୍ଜିନିୟର କବି ବନ୍ଧୁ ସ୍ୱପ୍ନେଶ୍ୱର ଦାସଙ୍କ ଲଳିତ୍ୟ ପୂର୍ଣ୍ଣ ସରଳ କବିତା ରଚନାରେ ଦକ୍ଷତା ହେତୁ ମୋର ଆସ୍ଥା ଜମିଲା । ତାଙ୍କ ବିରଚିତ "ପ୍ରବଚନସାର" ଏବଂ "ପ୍ରତିଭାପୂଜା" ମୁଁ ବେଶ ଭଲଭାବେ ଅଧ୍ୟୟନ କରିଛି । ତାଙ୍କ ଅନୁସନ୍ଧିତ୍ସୁ ମନ ତାଙ୍କୁ ଗବେଷଣା ପ୍ରତି ଆକୃଷ୍ଟ କରିଛି । ଅନେକରୁ ଏକ 'ଗୀତା' ତାଙ୍କର ରଚନା ଭଗବଦ୍ ପ୍ରାଣରେ ଏକ ନମୁନାମାତ୍ର । କବି ବନ୍ଧୁ ଦାସ ମହାଶୟ ବେଦ ସୂକ୍ତକୁ ବାଛି ବାଛି ସ୍ୱ ମାତୃ-ଭାଷାରେ ଅନୁବାଦକରି ପାଠକଙ୍କ ପାଇଁ ପରିବେଷଣ କରିଛନ୍ତି ।

ସତ୍ୟ ଏକ କଠିନ ଆପେକ୍ଷିକ ଶବ୍ଦ ଏବଂ ଏହାର ପାଳନ ତାଦୃଶ । ଠିକ୍ ସେହିପରି ଭାରତୀୟ ପ୍ରତିଭାର ଇଞ୍ଜିନିୟର ବିଶ୍ୱେଶ୍ୱରସ୍ୱାମୀଙ୍କ ଯଶୋଗାନ କରିବା ଇଞ୍ଜିନିୟର ସ୍ୱପ୍ନେଶ୍ୱରଙ୍କ ମହତ-ଗୁଣଯୁକ୍ତ କବିଭାବର ପରିଚୟ । ସେ ଠିକେ ଠିକେ ସବୁକଥାକୁ ସରଳ ବୋଧଗମ୍ୟ କବିତାରେ ପ୍ରକାଶ କରି ନିଜସ୍ୱ ଭାବବ୍ୟକ୍ତ କରିଛନ୍ତି । କବି ଯେଉଁ କାବ୍ୟକବିତା ରଚନାକରେ; ସେ ତହିଁରେ ନିଜର କଥା ଓ ସତ୍ୟକୁ ଭରି ଦିଏ । ତାହାହିଁ କବିବନ୍ଧୁ ଦାସ କରିଛନ୍ତି — ଇତର ଜନର ସେବା କରିବା ମହତଜନର କର୍ତ୍ତବ୍ୟ-ଯାହାକି ସେ ତାଙ୍କ ପ୍ରସ୍ତୁତ ପୁସ୍ତିକାରେ ପ୍ରକାଶ କରିଛନ୍ତି ।

ବନ୍ଧୁ ସୁପେଣ୍ଣଶ୍ୱର ବାବୁଙ୍କର ଅନେକ ପୁସ୍ତକ ପ୍ରକାଶିତ ହୋଇଛନ୍ତି-ଆଉ ଗୁଡ଼ିଏ ପ୍ରକାଶ ଅପେକ୍ଷାରେ-ତଥାପି ସେ ଲେଖି ଚାଲିଛନ୍ତି । ଏକାଧାରରେ ସେ ଜଣେ ଇଞ୍ଜିନିୟର ଆଉ ଓଡ଼ିଆ ଭାଷା ସାହିତ୍ୟର ସ୍ନାତକୋତ୍ତର ଉପାଧିଧାରୀ ଗବେଷକ ।

ତାଙ୍କଠାରୁ ଉତ୍କଳବାଣୀ ବନ୍ଦନା ଆଶା କରାଯାଏ । ଏଥିରେ ସେ ସଫଳ ହୁଅନ୍ତୁ; ଏହାହିଁ ପ୍ରଭୁଙ୍କ ପଦାରବିନ୍ଦରେ ମୋର ପ୍ରାର୍ଥନା ।

। ଇତି ।

ସୁରେନ୍ଦ୍ରନାଥ ମିଶ୍ର

ସମ୍ପାଦକ, ଭୁବନଶ୍ରୀ

କୁଞ୍ଜକାନ୍ତ; ଢେଙ୍କାନାଳ

# ଅଭିମତ

ବନ୍ଧୁ ସ୍ୱପ୍ନେଶ୍ୱର ଦାସଙ୍କର "ବିଶ୍ୱେଶ୍ୱରୟ୍ୟା ସ୍ମରଣେ" ପୁସ୍ତିକାଟି ପାଠ କରିବାର ସୁଯୋଗ ପାଇ ତାଙ୍କୁ ଧନ୍ୟବାଦ ଜଣାଉଛି । ଜଣେ ଇଞ୍ଜିନିୟରର କର୍ମମୟ ଜୀବନ ମଧ୍ୟରେ ସେ ଯେ ସାହିତ୍ୟ ସାଧନା ଦିଗରେ ନିଜକୁ ନିୟୋଜିତ କରି-ପାରିଛନ୍ତି, ସେଥିପାଇଁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ।

ବିଶ୍ୱେଶ୍ୱରୟ୍ୟା ସ୍ମରଣେ କବିତାରେ ଯନ୍ତ୍ରୀ ଭାବରେ ଜଣେ ଆଦର୍ଶ ଯନ୍ତ୍ରୀଙ୍କର କର୍ମମୟ, ଅକପଟ, ନିଷ୍ଠାବାନ କାର୍ଯ୍ୟାବଳୀ ଓ ଗୁଣାବଳୀର ଯେଉଁ ନିଚ୍ଛକ ଚିତ୍ର ସେ ଦେଇଛନ୍ତି, ତାହା ତାଙ୍କର ନିଜବୃତ୍ତି ପ୍ରତି ଶ୍ରଦ୍ଧା ଓ ନିଷ୍ଠାର ସୂଚନା ଦିଏ । 'ବିଶ୍ୱେଶ୍ୱରୟ୍ୟା' ଜଣେ ଦକ୍ଷ, କାର୍ଯ୍ୟକୁଶଳୀ ଓ ସ୍ୱାର୍ଥତ୍ୟାଗୀ ଇଞ୍ଜିନିୟର; ମୃତ୍ୟୁ ପର୍ଯ୍ୟନ୍ତ ଏ ଦେଶ ଓ ଜାତି ପାଇଁ ଅନେକ କାର୍ଯ୍ୟ କରିଯାଇଛନ୍ତି ଯାହା ସାଧାରଣତଃ ଆମ ଦେଶର ଜନତା ଓ ବିଶେଷତଃ ଇଞ୍ଜିନିୟର ମାନଙ୍କ ପାଇଁ ଏକ ମହାନ୍ ପରମ୍ପରା ସୃଷ୍ଟି କରିଛି ଏବଂ ଇଞ୍ଜିନିୟରିଂ ଇତିହାସରେ ଏକ ମାଇଲ୍ ଖୁଣ୍ଟ ରୂପେ ଦିଗ୍‌ଦର୍ଶନ ଯାବତ୍ ଚନ୍ଦ୍ରାର୍କେ ଦେଉଥିବ । ତେଣୁ ତାଙ୍କୁ ସାଧାରଣ ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ସର୍ବାଦୌ କର୍ତ୍ତବ୍ୟ ଯାହା ସ୍ୱପ୍ନେଶ୍ୱର ବାବୁ କରିଛନ୍ତି ।

ତାଙ୍କର କଲମ ମୁନରେ ପୁଷ୍ପବୃଷ୍ଟି ହେଉ ଏବଂ ସାହିତ୍ୟ ମାଧ୍ୟମରେ ସେ ଏ ଜାତିକୁ ଉଦ୍‌ବୋଧ କରନ୍ତୁ, ଆଜିର ଏ ଶୁଭ ଅବସରରେ ଏତିକି କାମନା ।

**ବସନ୍ତ କୁମାର ମହାପାତ୍ର**
ସଭାପତି, ଢେଙ୍କାନାଳ ଜିଲ୍ଲା ଲେଖକ ସଂସଦ
ତା ୨୫ । ୬ । '୯୨

# ଅଭିନନ୍ଦନ

ଶ୍ରଦ୍ଧେୟ ସ୍ୱପ୍ନେଶ୍ୱର ବାବୁଙ୍କ "ବିଶ୍ୱେଶ୍ୱରଯ୍ୟା ସ୍ମରଣେ" ପାଠକରି ଅପାର ଆନନ୍ଦ ଲାଭ କଲି । ସାର ମୋକ୍ଷଗୁଣ୍ଡମ ବିଶ୍ୱେଶ୍ୱରଯ୍ୟାଙ୍କ ଉପରେ କରିଥିବା କୌଣସି ରଚନା ଅଳ୍ପ ସାନ ବା ବଡ଼ ନୁହେଁ । ଯେତେ ସୁନ୍ଦର ଭାବରେ ଚେଷ୍ଟା କଲେ ବି ସାର୍ ଏମ୍. ଭି. ଙ୍କର ବ୍ୟକ୍ତିତ୍ୱର ବିଭିନ୍ନ ଦିଗକୁ ଆଲୋଚନା ବା କାବ୍ୟ ମାଧ୍ୟମରେ ସମ୍ପୂର୍ଣ୍ଣ ପରିସ୍ଫୁଟ କରିବା ସମ୍ଭବ ନୁହେଁ ।

ରଚନାଟି ପାଠକଲେ ମନ ଫେରିଯାଏ ଛାତ୍ର ଜୀବନ ଓ କର୍ମ ଜୀବନର ଆଦ୍ୟକାଳକୁ । ସାର୍ ଏମ୍. ଭି. ସୂର୍ଯ୍ୟପରି ପ୍ରକାଶମାନ ହୁଅନ୍ତି । ବହୁବର୍ଷ ପରେ ମଧ୍ୟ ଜଣାଯାଏ-କାହିଁ ସୂର୍ଯ୍ୟଠାରୁ ଦୂରରେ ତ ରହୁନାହିଁ, ବୋଧହୁଏ ଏତେ ଉଚ୍ଚ ଉଡ଼ିବାପାଇଁ ଡେଣାରେ ଶକ୍ତି ନାହିଁ । ନାଁ—ଅନ୍ୟ କିଛି.....? ଭଳି ମଧ୍ୟ ଏହାର ଉତ୍ତର ଦେବାପାଇଁ ଆରମ୍ଭରୁ ଓ ଶେଷରେ ଚେଷ୍ଟା କରିଛନ୍ତି । ତେବେ ବି ପାଠକଙ୍କ ଉପରେ ଛାଡ଼ିଛନ୍ତି—

"ଭାରତରେ ଆଜ ତାଙ୍କ ପରି ସତେ
ମିଳୁ ତ ନାହାନ୍ତି କିଏ ।"

ଇଂ-ସ୍ୱପ୍ନେଶ୍ୱର ଦାସ ଏହା ପୂର୍ବରୁ ବାଇଶଟି ରଚନା କାବ୍ୟ କବିତା ଆକାରରେ ଉପସ୍ଥାପନା କରିଅଛନ୍ତି । ତାଙ୍କର ଲେଖିବାର ଶୈଳୀ ସିଧା, ସରଳ ଓ ସ୍ୱାଭାବିକ —ଆଧୁନିକ ଇଙ୍ଗିତ ପୂର୍ଣ୍ଣ ରଚନା ଶୈଳୀର ଦୂରରେ କିନ୍ତୁ ଆନନ୍ଦପ୍ରଦ ଓ ଶିକ୍ଷଣୀୟ ।

ଏ ରଚନା ପାଇଁ ତାଙ୍କୁ ଅଭିନନ୍ଦନ ଜଣାଉଛି ଓ ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

**ଇଂ ରମେଶ ଚନ୍ଦ୍ର ତ୍ରିପାଠୀ**

# ଏତିକି ଆନ୍ତରିକ କାମନା

ଶ୍ରୀମାନ୍ ସୁରେନ୍ଦ୍ରଙ୍କ 'ବିଶ୍ୱେଶ୍ୱରୟା ସ୍ମରଣେ' ଏଇ ନାମାଙ୍କିତ ଅଷ୍ଟୋତ୍ତରଶତପଦ ସଂଗ୍ରଥିତ ପୁସ୍ତିକାଟି ପଢ଼ିଲି । ମହାମାନବ ବିଶ୍ୱେଶ୍ୱରୟାଙ୍କ ଦିଗନ୍ତ ବିସ୍ତାରୀ ବହୁମୁଖୀ ଅମଳିନ ପ୍ରତିଭାର ସମ୍ପୂର୍ଣ୍ଣ ପରିଚୟ ମୋତେ ଜଣା ନଥିଲା । ଏଇ କ୍ଷୁଦ୍ର ପୁସ୍ତିକାଟି ମୋତେ ତାଙ୍କ ଅନନ୍ୟ ସାଧାରଣ ପ୍ରତିଭା ସମ୍ବନ୍ଧ ଅତି ନିବିଡ଼ ଭାବେ ପରିଚିତ କରାଇ ଦେଲା । ବିଶ୍ୱେଶ୍ୱରୟା ଅଷ୍ଟମାସୋତ୍ତର ଶତ ସମ୍ବତ୍ସର ପରମାୟୁର ଅଧିକାରୀ ହୋଇ, ଜନ୍ମଭୂମିର ଅଷ୍ଟୋତ୍ତର ଶତାଧିକ ସେବାତ୍ମକ ମହତ୍ କାର୍ଯ୍ୟମାନ ସୁସମ୍ପନ୍ନ କରି, ଦେଶର ସର୍ବୋଚ୍ଚ ସମ୍ମାନ ସୂଚକ 'ଭାରତ ରତ୍ନ' ଉପାଧିରେ ବିଭୂଷିତ ହୋଇ ମରଶରୀର ପରିତ୍ୟାଗ ପୂର୍ବକ ଅମର ପଦବୀକୁ ସମୁନ୍ନୀତ ହୋଇଥିଲେ । ମୁଁ ଭାବୁଚି,—ଲେଖକ ଶ୍ରୀମାନ୍ ଦାସ ଏଇ କଥାକୁ ସତେ ଯେପରି ଆଖି ଆଗରେ ରଖି ଏଇ ଅଷ୍ଟୋତ୍ତର ଶତ ପଦ ସମ୍ବଳିତ ପୁସ୍ତିକା ଖଣ୍ଡିରେ ସେଇ କର୍ମବୀର ମହାମାନବଙ୍କର ଆଦର୍ଶ କର୍ମଗୁଡ଼ିକୁ ସ୍ମରଣ କରି ଅଛନ୍ତି । ଏଭଳି ଜଣେ କଠୋରକର୍ମୀ ଅଭୂତପୂର୍ବ ପ୍ରତିଭାଶାଳୀ-ଙ୍କର ମହାନ୍ ଆଦର୍ଶକୁ ଜଣେ ଇଞ୍ଜିନିୟର ହିସାବରେ ନିଜେ ସ୍ମରିକରି ଦେଶବାସୀଙ୍କୁ ସ୍ମରଣ କରାଇଦେବା ଶ୍ରୀମାନ୍ ଦାସଙ୍କର ମହତ୍ତ୍ୱର ପରିଚାୟକ ନିଶ୍ଚୟ । ପୁସ୍ତିକାଟି ପଢି ମନେ

ଦେଇଛ,—ସେଇ ଅମର ପଦବୀ ଆରୂଢ଼ ମହାନ୍ ଆତ୍ମା, ତାଙ୍କର ଅଗଣିତ ମହତ୍ତ୍ୱ କାର୍ଯ୍ୟାବଳୀ ଗୁଡ଼ିକରେ, ଗୀତାର—

"ମମ ବର୍ତ୍ମାନୁ ବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।"

ଏଇ ଅମୃତମୟୀ ଉପଦେଶ ବାଣୀକୁ ଆହୁରି ପ୍ରାଣବନ୍ତ କରି ଯାଇଛନ୍ତି ।

ଜନନୀ ଜନ୍ମଭୂମି ଭାରତ-ମାତାଙ୍କର ସ୍ନେହାଶିଷ ଧାର ସହିତ ଈଶ୍ୱରଙ୍କର ଶୁଭାଶୀର୍ବାଦ ବୋଳା ଫୁଲଚନ୍ଦନ ଆମ ଦେଶର ଅସଂଖ୍ୟ-ଇଞ୍ଜିନିୟର ବନ୍ଧୁମାନଙ୍କ ଉପରେ ପଡ଼ୁ, ଦେଶ ମାତୃକା ଗୋଟିଏ ବିଶ୍ୱେଶ୍ୱରୟାଙ୍କୁ ହରାଇ ତାଙ୍କଭଳି କୋଟି କୋଟି କୃତୀ ସନ୍ତାନ ଲାଭ କରୁ, ଏତିକି ଆନ୍ତରିକ କାମନା । ॥ ଇତି ॥

ପଣ୍ଡିତ ଶ୍ରୀ ଲୋକନାଥ ରଣା

ନରସିଂହପୁର, କଟକ

ତା ୧୩ । ୭ । ୧୯୯୨

ପଦ୍ମାଳ ରଜ

# ଉତ୍ସର୍ଗ

ଯିଏ ଜୀବନକାଳରେ ନିଜକୁ ଆଦର୍ଶ କରି
ଗଢ଼ିବାରେ ସତତ ବ୍ରତୀ,
ଯିଏ ଇଂଜିନିୟର ଭାବରେ ପ୍ରଖ୍ୟାତ,
ଯିଏ ନିଜର ସହକର୍ମୀ ମାନଙ୍କୁ ଆପଣାର ମନେକରି
ସେମାନଙ୍କ ଭ୍ରମକୁ ଦୂର କରିବାରେ ଚେଷ୍ଟିତ,
ସେଇ
ଋଷି ପ୍ରତିମ

**ଶ୍ରୀଯୁକ୍ତ ନରେଶଚନ୍ଦ୍ର ରାଉତ**

ଅଧିକ୍ଷଣ ଯନ୍ତ୍ରୀ, ରେଙ୍ଗାଲି କେନାଲ
ମଣ୍ଡଳଙ୍କୁ ବିଦାୟ କାଳୀନ ସଭାରେ

**ଏଇ "ବିଶ୍ୱେଶ୍ୱରୟା ସ୍ମରଣେ"**
ପୁସ୍ତିକାଟି
**"ରେଙ୍ଗାଲି କେନାଲ ମଣ୍ଡଳ"**
ତରଫରୁ
ଅର୍ପଣ କରି
ନିଜକୁ ଭାଗ୍ୟବାନ ମନେକରୁଛୁ ।

**ସୁ. ଦାସ**

# ବିଶ୍ୱେଶ୍ୱରାୟା ସ୍ମରଣେ

ଜଣକୁ ଯାହାଙ୍କ    କରିବା ସ୍ମରଣ
ବାର ବାର ଉଠେ ପ୍ରଶ୍ନ,
ଦିଏ ଯେ ଉତ୍ତର-    "ଖୋଜ ଅଲକ୍ଷ୍ୟରେ
ଦେଶ ପାଇଁ ସେବା-କର୍ମ ॥ ୧ ॥

ସୁଖ ଜଳାଞ୍ଜଳି    ସ୍ୱାର୍ଥହୀନଭାବେ
ଯିଏ କରେ ଦେଶ କାମ,
ସିଏ ସ୍ମରଣୀୟ,    ସିଏ ବରଣୀୟ
ସିଏ ଅଗ୍ରଗଣ୍ୟ-ମାନ୍ୟ, ॥ ୨ ॥

ସୈନିକ-ଶିକ୍ଷକ-    ନାୟକ ପରିଚୟେ
ଲଭେ ଯଥା ସନମାନ,
ବିଶ୍ୱେଶ୍ୱରାୟା    ସବୁଗୁଣେ ଯୁକ୍ତ
" ଭାରତ ରତ୍ନ " ପ୍ରମାଣ ॥ ୩ ॥

ତାଙ୍କର ଜୀବନୀ    କରିଦେଲେ ପାଠ
ଅନାୟାସେ ପଡ଼େ ଜଣା,
ଦେଶୋନ୍ନତି ପାଇଁ    କେପରି ଜାଗ୍ରତ
ଥିଲେ ସେହି ମହାମନା ॥ ୪ ॥

ହେ ବିଶ୍ୱେଶ୍ୱରାୟା    ଦେନ ପ୍ରଥମରେ
ମୋର ଭକତି ପ୍ରଣାମ,
ତୁମର ବିଷୟେ,    କରିବି ବର୍ଣ୍ଣନା,
ଆଶିଷ କର ପ୍ରଦାନ ॥ ୫ ॥

ଅଠରଶ ଏକ- ଷଠୀ ମସିହାର
ସେପ୍‌ଟେମ୍ବର ପନ୍ଦରରେ,
ମହୀଶୂର ରାଜ୍ୟ କୋଲର ଜିଲ୍ଲାର
ମୁଦେନ ହାଲ୍ଲି ଗ୍ରାମରେ ॥ ୬ ॥
ହୋଇଲ ଜନମ ବ୍ରାହ୍ମଣ କୂଳରେ
ଶ୍ରୀନିବାସ ଶାସ୍ତ୍ରୀ, ପିତା,
ସେ ଜ୍ୟୋତିଷ ଶାସ୍ତ୍ର ଡାକତରୀ ବିଦ୍ୟା
ବେଦ ବେଦାନ୍ତେ ସବିତା ॥୭॥
ଜନକ ସ୍ୱଭାବ ଗୁଣ ଗ୍ରାମ ନେଇ
ଜନମ ହୁଏ ସନ୍ତାନ,
ସଂଚିତ- ପ୍ରାରବ୍ଧ ପକାଏ ପ୍ରଭାବ
ଯଥାକାଳେ କ୍ରିୟମାଣ । ॥ ୮ ॥
ତୁଳସୀ ପତର ଦୁଇପତରରୁ
ମହକାଏ ବାସ ତାର,
ପ୍ରାଥମିକ ଶିକ୍ଷା କାହୁ ଜଣାଯାଏ
ଶିଶୁ ଅନ୍ତର-ବାହାର ॥ ୯ ॥
ଏଇ ଧର୍ମ ନେଇ ବିଶ୍ୱେଶ୍ୱରୟାଙ୍କ
ଚରିତ୍ର କଲେ ଗଠନ
ସକଳ ଗୁଣରେ ସିଏ ପ୍ରତିଭାତ
ଗୁଣ ଗଣରେ ଉତ୍ତମ ॥ ୧୦ ॥

ପରଜପକାଶ ସହାପ୍ନ କାଷ୍ଟପେ
ପନ୍ତ୍ୟବାଘ ସଜ୍ଜନ୍ୟ
ବନ୍ଧୁ-ବତ୍ସଳ ନିର୍ଭୀକ ସଂକଳ
ଦୃଢପୁବାନେ ଗଣନ ॥ ୧୧ ॥
ଏତେ ଗୁଣ ଥାଇ ଅହଙ୍କାଷ୍ଣ ନୋହୁ
ଝନପ୍ସୀ ହୋଇ ସତତ,
ବିଦ୍ୟା ଅଧ୍ୟୟନେ ବିଭୁଙ୍କ ଚରଣେ
ହୋଇଥିଲେ ସଦା ରତ ॥ ୧୨ ॥
ଅଠରଶ ଛଅ- ସ୍ତସ୍ତ ମସିହାରେ
ମାଧ୍ୟମିକ ଶିକ୍ଷା ଶେଷ,
ବାଙ୍ଗାଲୋର ସ୍ଥିତ ସେଣ୍ଟ୍ରାଲ କଲେଜେ
ହୋଇଲେ ସିଏ ପ୍ରବେଶ ॥ ୧୩ ॥
କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇ
ସିଏ ଅଣୀ ମସିହାରେ,
ଯାନ୍ତ୍ରିକ ଶିକ୍ଷା ଲାଭ କରିବାକୁ
ଚଳିଲେ 'ପୁନେ' ନଗରେ ॥ ୧୪ ॥
ତାଙ୍କର ମେଧା ଆନ୍ତରିକତା
ପାଣ୍ଡିତ୍ୟ-ପରାକାଷ୍ଠା
ପଢ଼ିଗଲା ଜଣା ପ୍ରତି କ୍ଷେତ୍ରେ କ୍ଷେତ୍ରେ
ସକଳ କ୍ଷେତ୍ରେ ପ୍ରତିଷ୍ଠା ॥ ୧୫ ॥

ଅଠରଣ ଡେପୁ-                ଅସୀ ସସିଦ୍ଧାରେ
ବମ୍ବେ ଝଣ୍ଟ ବଦ୍ୟାଳୟେ,
ହୋଇଲେ ପ୍ରଥମ                ଜ: ପି ହୋଲଡର
ସ୍ଥକଷ୍ଟ କରିଲେ ସିଏ ।। ୧୬ ।।

ସହକାରୀ ଯନ୍ତ୍ରୀ                ଭାବରେ ନିଯୁକ୍ତ
ବମ୍ବେ ଚ୍ରୁଣ୍ଡି ବନ୍ଦରରେ,
ମିଳେନାହିଁ ଯାହା                ଭାରତ ବାସୀଙ୍କୁ
ସିଧା ସଲଖ ଭାବରେ ।। ୧୭ ।।

କନ୍ଥୁଦନ ପାଇଁ                ସ୍ବାର୍ଗୀଙ୍କ ସହ
କାର୍ଯ୍ୟକର ଧୂଳିଆରେ,
ସେଇ ସ୍ଥାନକୁ ସେ                ହେଲେ ସ୍ଥାନାନ୍ତର
ସରକାର ଆଦେଶରେ ।। ୧୮

ଦଇବ ଯୋଗକୁ                ସ୍ବାର୍ଗୀଙ୍କ ଠାରୁ
ନେଇ ସକଳ ଦାୟିତ୍ୱ
ସ୍ୱରୁଚ୍ଛ ରୂପରେ                କଲେ ସମ୍ପାଦନ
ଯଶ ବଢ଼େ ଅପ୍ରମିତ ।। ୧୯ ।।

କର୍ତ୍ତବ୍ୟ ବୋଧ                କାର୍ଯ୍ୟ ଦକ୍ଷତା
କର୍ମ ନିଷ୍ଠା ସଙ୍ଗତରେ
ପ୍ରତିଭା ଥିଲେହିଁ                ସକଳ କରମେ
ସାଫଲ୍ୟ ମିଳେ ଅଚିରେ ।। ୨୦ ।।

ଖଟିଲେ ଖୋଦନ କେନାଲ ପଚିଶ
ମାଇଲ* ଅଛି କଥିତ,
ଉପର ହାକିମ ବିନା ପରାମର୍ଶେ
ତାହା ହେଲା ସମାପିତ ।। ୨୧ ।।

ଧୂଳିଆ ସହରୁ ପୁନା ନଗରକୁ
ଜଳ ଯୋଗାଣ ନିମନ୍ତେ
ହୋଇ ସ୍ଥାନାନ୍ତର କଲେ ସମାପିତ
ଖ୍ୟାତି ବଢ଼େ ଅବସରରେ ।। ୨୨ ।।

ଗଠନ ମୂଳକ କର୍ମେ ଅଭିମୁଖ୍ୟ
ସତତ ଥିଲା ଧିଆନ,
କାର୍ଯ୍ୟ ଦକ୍ଷତା ବୁଦ୍ଧିମତା ସହ
ଦାୟିତ୍ୱ ବୋଧ କରମ ।। ୨୩ ।।

ଅନୁକୂଳ ଗ୍ରହ ହୋଇଲେ ସୁଜନ
ଅସମ୍ଭବ ସମ୍ଭବରେ-
ହୁଏ ପରିଣତ ରହିଛି କଥିତ
ଭାଗ୍ୟବାଦୀ ସପକ୍ଷରେ ।। ୨୪ ।।

ଏଚ୍. ଏ. ପାଲପର ଉତ୍ତୀର୍ଣ୍ଣ ହେବାରୁ
ବିଭାଗୀୟ ପରୀକ୍ଷାରେ,
ଅଧୀକ୍ଷଣଯନ୍ତ୍ରୀଙ୍କ ହେଲା ପ୍ରମୋଶନ
ଅଧିବେଶ ନିୟମରେ ।। ୨୫ ।।

* ପଚିଶ ମାଇଲ = ୪୦ କିଲୋମିଟର ।

ଇଂରେଜ ସର୍କାର ପରୀକ୍ଷା ନିରୀକ୍ଷା
କରି କଲେ ପଦୋନ୍ନତି,
ଦୁଇ ବର୍ଷ ମଧ୍ୟେ ନୋଳବା କଥାକୁ
ଲାଭ କଲେ ମହାମନ୍ତ ॥ ୨୬ ॥

ହେଲେ ସହକାରୀ ନିର୍ବାହୀ ଯନ୍ତ୍ରୀ
ପଞ୍ଚାଅଣୀ ମସିହାରେ,
ନିର୍ବାହୀ ଯନ୍ତ୍ରୀ ପଦକୁ ଉତ୍ତୀର୍ଣ୍ଣ
ପୁଣି ନବେ ମସିହାରେ ॥ ୨୭ ॥

ଅଠରଶ ଚୌର- ନବେ ଫେବୃୟାରୀ
ହେଉଛି ଏବେ ସ୍ମରଣ,
ଓଲାଟଲେ ସିଏ ସୁକର ବ୍ୟାରେଜ
କରିବା ପାଇଁ ଗଠନ ॥ ୨୮ ॥

ଇଂଲଣ୍ଡରୁ ଆସି ଇଞ୍ଜିନିୟର
ପରୀକ୍ଷା ନିରୀକ୍ଷା କରି,
କଲେନ ସାହସ କରିବାକୁ ତାହା
କଥିତ ଅଛୁ ଏପରି ॥ ୨୯ ॥

ବିଶ୍ୱେଶ୍ୱରୟାଙ୍କ ପ୍ରଗାଢ଼ ନିଷ୍ଠା-
ବଳରେ ହେଲା ସମ୍ଭବ,
ସୁକର ବ୍ୟାରେଜ ନିର୍ମାଣ ପରେ
ବିଦେଶେ ବଢ଼େ ଗୌରବ ॥ ୩୦ ॥

ଆଳସ୍ୟମେ ଯଣ                    ଆଜ ଗଜରବ
ଝେଲଗଲ୍ ଚଉଦ୍ଦଗେ,
କଷ୍ଟକର କର୍ମେ                    ଦୁଃଖ ନିସ୍ତୁକ୍ତ
ଦୁଃଖ ନାହିଁ ମୁଖ ଘଚେଗ ॥ ୩୧ ॥

ଅଠରଶ ଅନେଶ୍ୱର                    ମସିହାରେ
ହେଲେ ବଦଳ 'ପୁନା'କୁ,
ଜଳସେଚନର                    ଉନ୍ନତ ନୟନେ
ନଯୋଗ କଲେ ନଜକୁ ॥ ୩୨ ॥

କୃଷକ ଗଣଙ୍କୁ                    କରୁଥାନ୍ତି ଗୋଳ
ସଦା ବନ୍ଧେ ଅଞ୍ଚଳର,
ଜଳ ବ୍ୟବହାର                    ନକଶ କରନ୍ତି
ଜଳ ଅପବ୍ୟବହାର । ୩୩ ।

ବୁଝାଇ ସୁଝାଇ                    କୃଷକ ଗଣଙ୍କୁ
ଦେଖାଇଲେ ଯେଉଁ ପଥ,
ସକଳ କୃଷକ                    ହେଲେ ଉପକୃତ
ସରକାର ଉପକୃତ ॥ ୩୪ ॥

ଜ୍ଞାନୀ ଜନ ସଦା                    ପାଇଥାଏ ପୂଜା
ସକଳ ପରିସ୍ଥିତରେ,
ଆଷ୍ଟର-ବଷ୍ଟର                    ଯେସ୍ଥାନେ ଯେପରି
କର ସେବା ପରକାରେ ॥ ୩୫ ॥

ବୁଦ୍ଧିର ପ୍ରୟୋଗ ନିଷ୍ଠାପର କର୍ମ
ଖ୍ୟାତ ବଢ଼ାଏ ଅତରେ,
ବିଶ୍ୱେଶ୍ୱରୟା ହୋଇଲେ ପୂଜିତ
ଭାରତ ସର୍କାର ଦ୍ୱାରେ ॥ ୩୬ ॥

ସରକାରୀ ଚେନ- କାଳ-କରେସିଜ
କ୍ୟାଣ୍ଡ୍ରଲ ଅବା ଲଣ୍ଡନ,
ନିଜକାମେ ସିଏ ଲଗାଇ ନାହାନ୍ତି
କଥିତ ଅଛୁ ଏସନ ॥ ୩୭ ॥

ଉତ୍କୋଚ ସ୍ପର୍ଶ କରନ ତାହାଙ୍କୁ
ସଦା ବନ୍ଧିତ କର୍ମରେ,
କାର୍ଯ୍ୟ କଳାପ କାର୍ଯ୍ୟ ଦକ୍ଷତା
ପଡ଼େ ସର୍କାର ନଜରେ ॥ ୩୮ ॥

ଆମର ଭାରତ ସୁଜଳା ସୁଫଳା
ଶସ୍ୟ ଶ୍ୟାମଳା ଦେଶ,
ପୃଥିବୀ ବାସୀଙ୍କ ସମ୍ମୁଖେ ବନ୍ଦିତ
ହୋଇ ଅଛଇ ବିଶେଷ ॥ ୩୯ ॥

ଶସ୍ୟର ଉନ୍ନତ ଜଳନେଇ ସିନା
ମିଳେନ ଜଳ ବେଳରେ,
ଅନୁଭବୀ ହୋଇ ଜଳ ବ୍ୟବହାର
କରିଲେ ବୁଦ୍ଧି ବଳରେ ॥ ୪୦ ॥

ଉନ୍ନତ ଧରଣ ଜଳର ସେଚନ
'ମୁଖ' 'ଶାଖ' କେନାଲରେ,
କଣ ବ୍ୟବହାର ଦେଖାଇ ସେ ଦେଲେ
କୃଷକର ନୟନରେ ॥ ୪୧ ॥

ଦାକ୍ଷିଣାତ୍ୟ ବର୍ଷା ହୁଏ ଅସମୟେ
ନିର୍ଦ୍ଦିଷ୍ଟ ମାନ ନଥାଇ,
ଟକଟା ମାଟିରେ ପାଣି ରହି ରହି
ଫସଲ ହୁଅଇ ନାହିଁ ॥ ୪୨ ॥

ଏଇସବୁ ଦେଖି "ବ୍ଲକ ସିଷ୍ଟମ"
'ଶାଖ' କେନାଲେ କଲେ,
ହେଲେ କୃତ କାର୍ଯ୍ୟ ତାଙ୍କର କୃତିତ୍ୱ
ଦେଶବାସୀଏ ଜାଣିଲେ ॥ ୪୩ ॥

ସିଏ ଉଣେଇଶ ଏକ ମସିହାରୁ
ତିନ ମସିହା ମଧ୍ୟରେ,
ସରକାର ଠାରୁ ନିମନ୍ତ୍ରଣ ପାଇ
ଗସ୍ତ କଲେ ଦେଶରେ ॥ ୪୪ ॥

ବିଭିନ୍ନ ସ୍ଥାନରେ ଜଳ ସ୍ଥାନ ଦେଖି
ଜଳସେଚନ ସୁବିଧା,
କପର ସମ୍ଭବ ହୋଇ ହିଁ ପାରିବ
ନ ରହିବ ଅସୁବିଧା ॥ ୪୫ ॥

ସିଏ ଏକ ଶଠା  କଶକ ପ୍ରସ୍ତୁତ
  ସରକାରେ ଦେବା ପରେ,
ଆମର ଓଡ଼ିଶା  ଡେଲଟା ସର୍କଲ
  ସୃଷ୍ଟି ହେଲା ସମୟରେ ॥ ୪୬ ॥

ଅଳପ ଖର୍ଚ୍ଚରେ  ଜଳ ଭଣ୍ଡାରର
  ବୃଦ୍ଧି ହେବ ଧନଶକ୍ତି,
ପଥଦ୍ରଷ୍ଟା ହୋଇ  ସେ ପଥ ଦେଖାଇ
  ଯାଇଛନ୍ତି ମହାମତି ॥ ୪୭ ॥

ତାହାଙ୍କ ସ୍ମୃତି  ସ୍ୱୟଂ ଗୁଞ୍ଜତ
  'ଗେଟ୍' ତାଙ୍କର ନାମେ
ରହିଅଛି ଆଜ  ଯଦ ସେ ନାହାନ୍ତି
  ଏଇ ମରଶୀଳ ଭୂମେ ॥ ୪୮ ॥

ଚାଲିଯାଏ ଜନ  ରହିଥାଏ ପୁଣ୍ୟ
  ବାସକର ଏ ମର୍ତ୍ତ୍ୟରେ,
ହୋଇଲେ ସେ ମର  ହୁଅଇ ଅମର
  ବିଧି ବିଧାନ ବିଧିରେ ॥ ୪୯ ॥

ରାଧାନାଥ ରାୟ  ପାର୍ବତୀ କାବ୍ୟରେ
  ଲେଖିଛନ୍ତି ଛନ୍ଦାବଳେ,
କେହି ରହିନାହିଁ  ରହିବେ ନାହିଁଟି
  ଭବରଙ୍ଗ ଭୂମି ତଳେ ॥ ୫୦ ॥

ସର୍ବେ ନିଜ ନିଜ  ଅଭିନୟ ସାରି
ବାହୁଡ଼ିବେ କାଳବଳେ,
ଗୋପବନ୍ଧୁଙ୍କର  ବାଣୀ ହୃଦୟରେ
ପ୍ରବେଶି ଲୁଚିବ ସୁବେଳେ ॥ ୫୧ ॥

ମାନବ ଜୀବନ  ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏ ନର  କର୍ମ ଏକା ତାର
ଜୀବନର ମାନ ଦଣ୍ଡ ॥ ୫୨ ।

ଏଇ ସତ୍ୟ ଚିନ୍ତି  ଜୀବନରେ ଯିଏ
କରୁଥାଏ ନିତ୍ୟ କାମ,
ସକଳ ସ୍ଥାନରେ  ହୋଇବ ପୂଜିତ
ଏହା ବିଧିର ବିଧାନ ॥ ୫୩ ॥

ଉଣେଇଶ ଛଅ-  ମସିହାରେ ଯିଏ
ବମ୍ବେ ସରକାର ପାଖେ,
"ଯାନଷ୍ଟାଷ୍ଟ ଇଂଜି-  ନିୟର" ଭାବରେ
ଯୋଗ ଦେଲେ ସେ ସଲଖେ ॥ ୫୪ ॥

ବମ୍ବେ ସହରକୁ  ଆବର୍ଜନା ହୀନ
କରିବା ପାଇଁ ସର୍କାରେ
ଦେଲେ ଏକ ସ୍କିମ  ଯାହାର ଫଳରେ
ମଇଳା ନାହିଁ ବମ୍ବେରେ ॥ ୫୫ ॥

ପରମାର୍ଜିତ          କରିବା ପାଇଁକ
ପାଖେ ଥିବା ନିଜଜ୍ଞାନ,
ଉଣେଇଶ ଆଠ-          ନଅ ମସିହାରେ
କଲେ ବିଦେଶ ଭ୍ରମଣ ॥ ୫୬ ॥

ଅନୁଭୂତି ନେଇ          ଫେରିଥିଲେ ସିଏ
ସରକାର ଚାକିରିରେ,
ହୋଇଥିଲେ ବନ୍ଧା          ଦେଶ-ଦଶ ସେବା
ହେବ ନାହିଁ ପ୍ରବୃତିରେ ॥ ୫୭ ॥

ଏଣୁ ରତ୍ନାକର          ଛାଡ଼ିଲେ ଚାକିରି
ସ୍ୱେଚ୍ଛାକୃତ ଭାବେ ସିଏ,
ଭାରତରେ ଆଜ          ତାଙ୍କପରି ସତେ
ମିଳୁତ ନାହାନ୍ତି କଏ ॥ ୫୮ ॥

ଜାଣିଥିଲେ ସିଏ          ନିଜସ୍ୱତ ପାଇଁ
ହ୍ୱନ୍ ନୁହଁଇ ଜନମ,
ସ୍ୱାର୍ଥହୀନ ସେବା          କରି ପର ପାଇଁ
ଧନ୍ୟ ନିଜର ଜୀବନ ॥ ୫୯ ॥

ଢୋଲର ବାଇଦ          କୋଶେ ଯାଏ ସିନା
ବହୁକୋଶ ତୁଣ୍ଡବାଦ୍ୟ
ଅଳପ ସମୟେ          ଜାଣି ପାରିଥିଲେ
ନିଜାମ ହାଇଦ୍ରା ବାଦ ॥ ୬୦ ॥

ଉଣେଇଶ ଆଠ          ସେପ୍ଟେମ୍ବର ମାସ
ଅଠାଇଶ ତାରିଖରେ,
'ମୁଶୀ' 'ଇସୀ' ବନ୍ୟା          ଷପୃଷନ୍ତ ଚନ୍ତା
ହାଇଦ୍ରାବାଦ ଜନରେ ।। ୭୧ ।।

ଘୂର୍ଣ୍ଣିବାତ୍ୟା ବନ୍ୟା          ସର୍ବ ବନ୍ଧ ମିଳି
ମିଳଲେ ଏକ ସ୍ରୋତରେ,
ମୁଶୀ ନଦୀ ହେଲ          ଢ'ଙ୍ଗରେ ବଭକ୍ତ
ହାଇଦ୍ରାବାଦ ନଗରେ ।। ୭୨ ।।

ଧନଜନ ମାନ          ସମ୍ପୂର୍ଣ୍ଣ ବପନ୍ନ
ନଗରରେ ଲୋକଗଣେ,
ଭାଗ୍ୟକୁ ଆଦର          ରହଲେ, ବକଳେ
ଡାକ ଡାକ ନାରାୟଣ ।। ୭୩ ।।

ମୁଖେ ନାହିଁ ହସ          ବଷାଦ ରାଜତ
କରୁଅଛୁ ସର୍ବଜନେ,
ହାଇଦ୍ରାବାଦର          ନଜାମ ଚନ୍ତତ
ଲୋକମାନଙ୍କ ରକ୍ଷଣେ ।। ୭୪ ।।

ନୃପତ ଧରମ          ପରଜା ପାଳନ
ଅନୁଭବୀ ତା' ନଜାମ,
ବଶ୍ୱେଶ୍ୱରୟାଙ୍କ          ପରାମର୍ଶ ପାଇଁ
କଲେ ତାଙ୍କୁ ନମନ୍ତ୍ରଣ ।। ୭୫ ।।

ସେଇ ସମୟରେ ବିଶ୍ୱେଶ୍ୱରୟା
ଇଉରୋପ ଭ୍ରମଣରେ,
ପାଇ ନିମନ୍ତ୍ରଣ ଫେରିଲେ ଦେଶକୁ
ଦେଖା କଲେ ନିଜାମଟର ॥ ୬୬ ॥

କଥୋପ କଥନ କରିବା କାଳରେ
ଦେଇଥିଲେ ନିଜ ମତ,
ଉପଦେଷ୍ଟା ଭାବେ ରହିଥିବେ ସିଏ
ଦୁଃଖ ନପିବା ପର୍ଯ୍ୟନ୍ତ ॥ ୬୭ ॥

ସକଳ ପରୀକ୍ଷା ନିରୀକ୍ଷାର ପରେ
ନିଜ ସ୍କିମ ଦେଲେ ନେଇ,
ବନ୍ୟା ବିପତ୍ତି ମୁଖରୁ ନଗର
ନିର୍ମାଣ କରିବେ ସେଥି ॥ ୬୮ ॥

ଭୂମିତଳେ ନେବେ 'ଡ୍ରେନେଜ' ସକଳ
ଜଳ ନିଷ୍କାସନ ପାଇଁ,
ଦୁଇଗୋଟି ଜଳ ଭଣ୍ଡାର କରିବେ
ଦୁଇନଦୀ ମଧ୍ୟ ଦେଇ ॥ ୬୯ ॥

ନଦୀର ବନ୍ଧକୁ ଉଚ୍ଚା କରିଦେବେ
ଦେଖି ନଗର ପତନ,
ନଦୀ କୂଳେ କୂଳେ ଭ୍ରମଣ ଉଦ୍ଦେଶ୍ୟ
ପଥ-ବଗିଚ୍ଚ ଗଠନ ॥ ୭୦ ॥

ଊନବର୍ଷ ଛଅ- ମାସପରେ ସ୍କିମ
କାର୍ଯ୍ୟ ପରିଣତ ପାଇଁ,
ଆଗେଇ ଆସିଲେ ନିଜାମ ସର୍କାର
ବନ୍ଧ ଶୁଭ ଲକ୍ଷ୍ୟ ନେଇ ॥ ୭୧ ॥

ଦୁଇଗୋଟି ବନ୍ଧ ଶୁଭ ଦେବା ପରେ
ବିଶ୍ୱେଶ୍ୱରୟ୍ୟାଙ୍କ ଗୁଣ,
ସାତ୍ତ୍ୱିକ ବିଧାନେ ଭରିଲେ କୀର୍ତ୍ତନ
ଯାହା ଗୁଣ ସଙ୍ଗେ ସମ ॥ ୭୨ ॥

ଜନମ ମାଟିର ଉନ୍ନତି ନିମିତ୍ତ
ହୋଇଲେ ସଂକଳ୍ପବଦ୍ଧ,
ମୁଖ୍ୟ ମନ୍ତ୍ରୀ ଯେବେ କରି ଯୋଗଦାନ
କାମ କରିଲେ ଅସାଧ୍ୟ ॥ ୭୩ ॥

'ମଞ୍ଜିରା ନାଭି'ରେ ଜଳ ଭଣ୍ଡାରଟି
କରି ଅରଜିଲେ ନାମ,
"କାବେରୀ ନଦୀ"ରେ "କୃଷ୍ଣ ସାଗର"ହିଁ
ଘୋଷୁଛି ତାଙ୍କ ସୁନାମ ॥ ୭୪ ॥

ଭାରତ ବର୍ଷର ବହୁମୁଖୀ ବନ୍ଧ
ଏ ପ୍ରଥମ ଗଣନରେ,
ଏହାରି ବଳରେ ମହୀଶୂର ଆନ୍ଧ୍ର
ପୂର୍ଣ୍ଣ ଶସ୍ୟ ଶ୍ୟାମଳରେ ॥ ୭୫ ॥

ଜଳ ସେଚନର ବହୁଳ ପ୍ରସାରେ
ବଢ଼ିଗଲା ତାଙ୍କ ନାମ,
"ବିଶ୍ୱେଶ୍ୱରୟା କେନାଲ୍" କହନ୍ତି
ଆଜି ଜନ ସାଧାରଣ ।। ୭୬ ।।

ଶିକ୍ଷା ସ୍ୱାସ୍ଥ୍ୟ ସଙ୍ଗେ ଆର୍ଥିକ ଉନ୍ନତି
କରିବାରେ ଦେଲେ ମନ,
ମହୀଶୂର ମହା- ରାଜା ଖୁସି ହୋଇ
ତାଙ୍କୁ କରିଲେ ଦେୱାନ ।। ୭୭ ।।

କହିଥିଲେ ଗାନ୍ଧୀ 'ବିଶ୍ୱେଶ୍ୱରୟା'ଙ୍କ
ଯୋଗୁଁ ଏଇ ମହୀଶୂର,
ଭାରତ ବର୍ଷରେ ଲଭିଛି ସୁନାମ
ଧନ୍ୟ ସେହି କର୍ମବୀର ।। ୭୮ ।।

କହନ୍ତି ଅନେକ କରନ୍ତି ଅଳପ
ସବୁ ଯୁଗେ ସବୁ କାଳେ,
ବିଶ୍ୱେଶ୍ୱରୟା ଯା'ଚିନ୍ତା କରନ୍ତି
କରିଥାନ୍ତି ବୁଦ୍ଧି ବଳେ ।। ୭୯ ।।

ଶିଳ୍ପର ଉନ୍ନତି ହୋଇଲେ ଏ ଦେଶ
ହେବ ଆର୍ଥିକ ଉନ୍ନତ,
ଅନୁଭବୀ ଏହା ବସାଇଲେ ଶିଳ୍ପ
ଭିନ୍ନ ଭିନ୍ନ ମହାମତ ।। ୮୦ ।।

ଗମନା ଗମନ                କରିଲେ ସୁବିଧା
କରିବସ୍ଥା ନିରମାଣ,
ରେଳଗାଡ଼ି ପଥ                ବଢ଼ାଇଣ ଦେଲେ
ଭବିଷ୍ୟ ଦୃଷ୍ଟି ସମ୍ପନ୍ନ ।। ୮୧ ।।
ମହୀଶୂର ବ୍ୟାଙ୍କ                ଲାଇବ୍ରେରି ଆଦି
ଗଢ଼ା ତାଙ୍କ ନିରଦେଶେ,
ଇଞ୍ଜିନିୟରିଙ୍ଗ                କଲେଜ ହସ୍ପିଟ
ବାଙ୍ଗାଲୋରରେ ସରସେ ।। ୮୨ ।।
ଭାରତ ବିଜ୍ଞାନ                କଂଗ୍ରେସରେ ସିଏ
ସଭାପତି ଆସନରେ;
ହେଲେ ଅଳଙ୍କୃତ                ଉଣେଇଶ ବାର-
ମସିହାରେ ଲକ୍ଷ୍ନୌଠାରେ ।। ୮୩ ।।
ସଉନ୍ଦର୍ଯ୍ୟ ଗନ୍ତା-                ଘର ବୃନ୍ଦାବନ
ତାଙ୍କ ନିର୍ଦ୍ଦେଶେ ଗଠିତ,
ଓଡ଼ିଶା ମାଟିର                ହୀରାକୁଦ ବନ୍ଧ
ତାଙ୍କରି ପରିକଳ୍ପିତ ।। ୮୪ ।।
ଉଣେଇଶ ଉଣେ-                ଇଶି ମସିହାରେ
ଦେବାନ ପଦ ବରିଜ,
ନୂତନ ପ୍ରକାର                ଜୀବନ ଯାପନେ
ବନାଇଲେ ତାଙ୍କ ମର୍ଜି ।। ୮୫ ।।

ଅବସର ପରେ ସକଳଙ୍କ ଚିନ୍ତା
କାଟିବେ କାଳ ଶାନ୍ତିରେ,
ବୋଝ ବୋହିବାକୁ ନୋହିବେ ପ୍ରସ୍ତୁତ
କହୁଁସେ ସରକାରେ ॥ ୮୬ ॥
ମାତଲ ଏ ବେଳେ ଦେଶ କଞ୍ଚାଦ୍ରବ୍ୟ
ବୃଦ୍ଧି ହୋଇବା ନିମିତ୍ତ,
କଲେ ପରିଶ୍ରମ ପ୍ରଜାପାଇଁ ଯେହ୍ନେ
ମନ ଥାଏ ସଦା ଲିପ୍ତ ॥ ୮୭ ॥
କମ୍ପେ କଚିଟିରେ ଉପଦେଷ୍ଟା ହୋଇ
କଟାଇଲେ ଦିନମାନ,
ଜଳର ଯୋଗାଣ ଜଳ ନିଷ୍କାସନ
ପାଇଁ ସ୍କିମ ବିତରଣ ॥ ୮୮ ॥
ମହୀଶୂର-ପୁନା- ଧୂଳିଆ-ସୁରଟ
ହାଇଦ୍ରାବାଦ-ବରୋଦା;
ନାଗପୁର-ଗୋଆ ସଂଗାଳୀ ସ୍ଥାନ:ଦ
ଭୁଲି ପାରିବେନି କଦା ॥ ୮୯ ॥
ଓଡ଼ିଶା ହିରାକୁଦ ବନ୍ୟା ନିୟନ୍ତ୍ରଣ
ଭୃଙ୍ଗଭଦ୍ରା ଯୋଜନାରେ
ବିଶ୍ବେଶ୍ବରୟ୍ୟାଙ୍କ ଅଛି ଅବଦାନ
ଓଡ଼ିଶାବାସୀ ସ୍ମରେ ॥ ୯୦ ॥

ବନ୍ୟା ସମ୍ବୃତ ରେଲଓ୍ୱେ ବ୍ରିଜ
ଗଙ୍ଗା ନଦୀର ଉପରେ,
କରିବା ପାଇଁକ ପ୍ଲାନ ଦେଇକଲେ
ଉଣେଇଶ ବାଉନରେ* ॥ ୯୧ ॥

ସର୍ବ ଭାରତୀୟ ଶିଳ୍ପର ଉନ୍ନତି
ସମ୍ଭବ ସଙ୍ଘ· ମାଧ୍ୟମେ,
ଅନୁଧ୍ୟାୟୀ ସଙ୍ଘ- କରି ସଙ୍ଗଠିତ
ଭାବରେ ଲାଗିଲେ କାମେ ॥ ୯୨ ॥

ତାହାର ସକଳ ଉନ୍ନତି ପାଇଁକି
ହୋଇଥିଲେ ନିର୍ଦ୍ଦେଶକ,
ଅଠେଇଶ ବର୍ଷ ନିର୍ଦ୍ଦେଶନା ଫଳେ
ଆର୍ଥିକ ବୃଦ୍ଧି ଅନେକ ॥ ୯୩ ॥

ସକଳ କରମେ ହୋଇ କୃତକାର୍ଯ୍ୟ
ଲଭିଥିଲେ ସନମାନ,
ସି: ଆଇ: ଇ.* କେ. ସି: ଆଇ: ଇ·*
ସର୍ବୋଚ୍ଚ ଭାରତ ରତ୍ନ* ॥ ୯୪ ॥

---

* ୧୯୫୨ ରେ ବିହାର ପ୍ରଦେଶର Railway bridge ନିଜେ ପ୍ଲାନ ଦେଇ କାର୍ଯ୍ୟକାରୀ କରିଥିଲେ ।

* C I.E. Companion of Indian Empire 1911

* K.C.I E. Knight Commander of Indian Epmire 1915.

* ଭାରତ ରତ୍ନ 1955

ଆଠଗୋଟି ବର୍ଷ- ବିଦ୍ୟାଳୟୁ ଆସେ
ଛଡପଡନୀ ବିଭିନ୍ନ,
ଅହଂକାର ନାହିଁ ସେଥିପାଇଁ ଟିକେ
ଯାହାଙ୍କ ମହତ ଗୁଣ ॥ ୯୫ ॥

ଜୀବନେ ନାହାନ୍ତି ଉନୈଶ ବା'ଷଠୀ
ଏପ୍ରିଲ ଚଉଦ ଦିନୁ,
ନାଚିଯାଏ ତାଙ୍କ ଜୀବନୀ ଚରିତ
ଯିବ ନାହିଁ ହୃଦ ମନୁ ॥ ୯୬ ॥

ଜାଣିଥିଲେ ସିଏ ମାନବ ଜନମ
ସେବା ପାଇଁ ଅଗରର,
ସେତେ ପରକାରେ ସେବା କରିଦେବ
କରୁଥିଲେ ସେ ଆନର ॥ ୯୭ ॥

ଭକ୍ରା ନଙ୍ଗଲ କୃଷ୍ଣ ସାଗର
ଦେଖି ବୃନ୍ଦାବନ ବାଗ,
ସୁନ୍ଦର ବ୍ୟାରେଜ ହୀରାକୁଦ ବନ୍ଧ
ହୃଦେ ଆଣଇ ଆବେଗ ॥ ୯୮ ॥

ଦେଶ ଆଗେଇବ ଏଇ ଚିନ୍ତା ଥିଲା
ତାଙ୍କ ହୃଦୟେ ସତତ,
ଜୀବଦଶା ମଧ୍ୟେ ସ୍ୱାର୍ଥ ହୀନ ସେବା
ସକଳ କର୍ମେ ବିଦିତ ॥ ୯୯ ॥

ଐଶ୍ୱରିକ ଭାବ ତାଙ୍କର ହୃଦୟେ
ହୋଇଥିଲା ଦୃଢ଼ୀଭୂତ,
ଅପତ ଧନକୁ ଛୁଇଁବା ସକାଶେ
ଯାଏ ନାହିଁ ତାଙ୍କ ହସ୍ତ ॥ ୧୦୦ ॥
ହୋଇଲେ ଜନମ ନିଶ୍ଚିତ ମରଣ
ଏଇ ବେଦବାଣୀ ସତ୍ୟ,
ଆଜି ଭାରତରେ ମରି ସେ ଅମର
କର୍ମ ସାକ୍ଷୀହିଁ ସତତ ॥ ୧୦୧ ॥
“କର୍ମ ଜୀବନର ସ୍ମରଣ ଶକ୍ତି”※
ପୁସ୍ତକ ତାଙ୍କର ଲେଖା,
ଜୀବନ କାଳରେ କରିଥିବା କର୍ମୁ
ମିଳିଥାଏ ବହୁ ଶିକ୍ଷା ॥ ୧୦୨ ॥
ବିଶ୍ୱକର୍ମା ଭାବେ ସିଏ ପୂଜନୀୟ
ଆଧୁନିକ ଭାରତରେ,
ପାଞ୍ଚୋଟି ଏମ୍‌ର * ମାଲିକ ଯନ୍ତ୍ରୀ ଏ
ଦେଖାଇଲେ ଅଲକ୍ଷ୍ୟରେ ॥ ୧୦୩ ॥
ହେ ବିଶ୍ୱେଶ୍ୱରୟା ଯନ୍ତ୍ରୀଙ୍କ ତରଫୁ
କରେ ଏହି ନିବେଦନ,
ଯନ୍ତ୍ରୀଙ୍କର ମାନ ବୃଦ୍ଧି ହେବା ଲାଗି
ସ୍ୱରଗ୍ରୁ କର ଗମନ ॥ ୧୦୪ ॥

---

※ Memory of working life.

* Mind, Money, Material, Men, Machine

ମିତ୍ରନ ସମ୍ମାନ    ତାହାଙ୍କୁ କମାଇ
ବଢ଼ୁର କର ହୃଦତରେ,
ତୁମର ସୁବିଧା    ଦେଖି ଆସ ଥରେ
କହିବାକୁ ସରକାରେ ।। ୧୦୫ ।।

ମନ୍ତ୍ରୀଙ୍କର ଯୋଗୁଁ    ଦେଶ ଅର୍ଥ-ମାନ
ବଢ଼ଇ ସବୁ ଦିଗରେ,
ଏକଥା ବୁଝାଇ    ଯିବ ସରକାରେ
ବିଧି ବିଧାନ ବିଧିରେ ।। ୧୦୬ ।।

ଦେଶ ବିଦେଶର    ମନ୍ତ୍ରୀଙ୍କୁ ଚିଠିଏ
କହିବସେ ଲେଖାରେ,
ବିଶ୍ୱେଶ୍ୱରାୟାଙ୍କ    ପରି ଆମେ ହେବା
କାର୍ଯ୍ୟମନ ବାକ୍ୟାଦିରେ ।। ୧୦୭ ।।

ଈଶ୍ୱରଙ୍କ ଠାରେ    ଏତିକି ପ୍ରାର୍ଥନା
ଦିଅନ୍ତୁ ଅସୀମ ଶକ୍ତି,
ସକଳ ମନ୍ତ୍ରୀଏ    ହୋଇ ଏକମତି
କରନ୍ତୁ ଦେଶ ଉନ୍ନତି ।। ୧୦୮ ।।

# ବିଶ୍ୱେଶ୍ୱରୟା ସ୍ମରଣେ

## ସମବେତ କଣ୍ଠ ସଙ୍ଗୀତ

ଭାରତ ମାତାର ସୁଯୋଗ୍ୟ ସନ୍ତାନ
ହେ ବିଶ୍ୱେଶ୍ୱରୟା କରୁଛୁ ପ୍ରଣାମ ॥ ୦ ॥

ତୁମର ଜନମ ଶତେ ଯନ୍ତ୍ରୀଗଣ, ତୁମକୁ ସ୍ମରନ୍ତି କରି ଗୁଣଗାନ,
ତୁମ କାର୍ଯ୍ୟଗରି ଏଣ ପଥରୁଷ, ଯନ୍ତ୍ରୀଙ୍କ ପାଇଁ ସଦା ଆଦରଣ,
ତୁମେ ହିଁ କେବଳ ତୁମର ତୁଳନ ॥ ୧ ॥

× × ×

ମାନବ ଜୀବନ ନୁହଁଇ କେବଳ, ନିଜର ଆୟୁଷ ମାପାରେ,
କର୍ମେ ଜଣେ ନର କର୍ମ ଏକତାର; ଜୀବନର ମାନଦଣ୍ଡରେ,
(ସିଏ) ସ୍ମରଣ, ହୋଇଥାଏ ସବୁବେଳକୁ,
ତୁମ କାର୍ଯ୍ୟଗରି ନିର୍ଦ୍ଦେଶ ଦଅଇ ତୁମପରି କର୍ମୀ ହେବାକୁ ॥୨॥

× × ×

ଅସମ୍ଭବ କିଛି ନାହିଁ କେବେ ଦୁନିଆରେ,
ସବୁ କିଛି କରିହୁଏ ସାଧନା ବଳରେ,
ଟାଙ୍ଗର ଭୂମିକୁ କଲ ସୁଶସ୍ୟ ଶ୍ୟାମଳ,
ନିଜାମ ହାଇଦ୍ରାବାଦ ଦେଖି ହେଲେ ହେଳ,
ଯଶଗାନ କରି କରିଲେ ଦେବାନ ॥ ୩ ॥

× × ×

ଦେଶ ଆଗେଇବ ଏ ଚିନ୍ତା ଥିଲା ତୁମ ମନରେ,
ସ୍ବାର୍ଥ ତ୍ୟାଗ ସେବା କରିଛ ତୁମେ ଜୀବଦଶାରେ,
ଭାରତ ନିଖିଳ କଂଗ୍ରେସେ ଥିଲା ତୁମର ସ୍ଥାନ,
ପାଇଅଛ ଦେଶୁ ସମ୍ମାନ ଶ୍ରେଷ୍ଠ ଭାରତ ରତ୍ନ,
ତାଠାରୁ ଅଧିକ କି ଦେବୁ କରୁ ତବ ସ୍ମରଣ ।। ୪ ।।

× × ×

ତୁମ ଈଶ୍ବରଙ୍କ ଭାବ ନଶ୍ବରେ ନୁହେଁ ସମ୍ଭବ
ତୁଇଁ ନ ଥିଲ ତ ଧନ ତୁମେ ଦେଶର,
ସ୍ବର୍ଗରୁ ଓହ୍ଲାଇ ଆସି ଆଶିଷ ଧାର ବରଷି
ଦେଶର ନେତାଙ୍କୁ କୁହ-ହେ ସରକାର,
ଯନ୍ତ୍ରୀଙ୍କର ଯୋଗୁଁ ଦେଶରେ,
ଅର୍ଥ-ମାନ ବୃଦ୍ଧି ହୁଏ ସବୁ ଜଗରେ,
ଦିଅ ତାଙ୍କୁ ଯଥା ସମ୍ମାନ ।। ୫ ।।






୧୯-ମନ୍ଥ ଝରଣା, ୨୦-ଅଦୃଷ୍ଟର ସ୍ରବଣ,

୨୧-ଦ୍ୱାପରରେ ସୀତା, ୨୨-ସମାଗ୍ରଜ ବଣ୍ଟନ,

୨୩-ବଶ୍ୱେଶ୍ୱରସ୍ୱାମୀ ସ୍ମରଣେ, ୨୪-ସେବାଦଳ ଶିକ୍ଷା,

୨୫-ମନ୍ତ୍ରମୂଳତ୍ତ୍ୱ (ଅନୁବାଦ)

**ପ୍ରକାଶ ଅପେକ୍ଷାରେ**—●ସମାଜ, ●ଦରଦୀ ହୃଦୟ, ●ବିଷାଦ ମୋଚନ, ●ଷଡ଼ ଦର୍ଶନ, ●ଧ୍ୟାନ, ●ଭକ୍ତି, ଭକ୍ତ, ଭଗବାନ ଓ ଅନ୍ୟାନ୍ୟ, ●ପଥଦ୍ରଷ୍ଟା (ଉପନ୍ୟାସ)

**ପ୍ରସ୍ତୁତ ପଥେ** : ●ପରିଶୋଧ ( ଉପନ୍ୟାସ ), ●ଘରେ କହୁଥିଲେ, ●ରେଙ୍ଗାଳୀ ଯୋଜନା, ●ଭୁଲ କାହାର ?



## ଲେଖକଙ୍କ ପରିଚୟ

ନାମ-ଶ୍ରୀ ସ୍ୱପ୍ନେଶ୍ୱର ଦାସ
ଜନ୍ମ-୧୯୪୦ ମସିହା
ଜୁନ୍ ୨୨ ତାରିଖ
ଜନ୍ମସ୍ଥାନ-କୋକଲବା
ଥାନା-ନରସିଂହପୁର
ଜି-କଟକ
ବୃତ୍ତି-ସରକାରୀ ଚାକିରି ।
ସୌଖୀନ-ଅବସର
ସମୟରେ ଲେଖନ ଓ ପଠନ ।

ରଚନାବଳୀ :—

**ପ୍ରକାଶିତ** ୧-ଅନୁଭୂତ ବାଣୀ
୨-ଭକ୍ତ ପୀୟୂଷ
୩-ଗୁରୁ ଦର୍ଶନ
୪-ଏଇ ଯୋର ସାଧନା

ଓଡ଼ିଶା ସରକାରଙ୍କ ଦ୍ୱାରା
୧୩-୧୨-୭୩ ମସିହାରେ
PRIZE LIBRARY
ପୁସ୍ତକ ରୂପେ ଅନୁମୋଦିତ ।

୫-ସ୍ୱର୍ଣ୍ଣବର୍ତ୍ତି ଧାରା (୧, ୨, ୩ ଓ ୪ର ସମିଶ୍ରଣ) ୬-ଅଭିଳାଷ ୭-ଜୀବନୀ ଉପରୁ ପୃଷ୍ଠାଏ ଓ ଅନ୍ୟାନ୍ୟ, ୮-ପ୍ରବଚନ ସାର ୯-କର୍ମୀ ଜୀବନୀ, ୧୦-ଭଜ ଗୋବିନ୍ଦମ, ୧୧-ଏ ମଣିଷ କଣଟି ପଥର, ୧୨-ସଙ୍ଗୀତ କୁଞ୍ଜ, ୧୩-ନାଥ କହେ ଅଜାଙ୍କୁ, ୧୪-ଗୀତା ( ବିଭିନ୍ନ ରାଗ ରାଗିଣୀ ମାଧ୍ୟମରେ ) ୧୫-ପ୍ରଭୁଙ୍କ ପୂଜା, ୧୬-ଭିକ୍ଷା, ୧୭-ଅଭିଳାଷ ଭିକ୍ଷା, ୧୮-ଭ୍ରମର ସ୍ମରଣେ

( ଦୟାକରି ପରପୃଷ୍ଠା ଦେଖନ୍ତୁ )